# ଯାଦୁକର

(ଶିଶୁ ଓ କିଶୋର ଉପନ୍ୟାସ)



ଡକ୍ଟର କୃତ୍ତିବାସ ନାୟକ

(ଜାତୀୟ ପୁରସ୍କାରପ୍ରାପ୍ତ ଲେଖକ)

ଅରୁଣ-ତରୁଣ

ରାଉରକେଲା

ISBN No.-81-901015-0-6

# ଜାଦୁକର

## ଡକ୍ଟର କୃତ୍ତିବାସ ନାୟକ



# ZADUKAR

*Author :*

• DR. KRUTTIBAS NAYAK

*Publisher :*

**Arun Tarun**

Jagda, P.O.: Jhirpani

Raurkela - 769042

Ph. : 0661-570704

1st Edition 1999

**DTP : Sibesta Graphix**

Shaktinagar, Raurkela

**Price : Rs. 10/-**

କୋରାପୁଟ ଜିଲ୍ଲାର, ସରଗପୁର ଗାଆଁରେ; ଶୁକୁରାର ଘର। ଘର ଆଗରେ ସୁନ୍ଦର ବଗିଚାଟିଏ। ଦିନେ ସଞ୍ଜ ହୋଇ ଆସୁଥାଏ। ଶୁକୁରା ବଗିଚାରେ ବୁଲୁଥିଲା। ତା'ର ଅତୀତ ଜୀବନର କଥା ମନେ ପଡ଼ିଗଲା। ସେଦିନ ଲାଠି ଦେବତାର ଅଭିନୟ ଠିକ୍ ଭାବେ କରିପାରି ନଥିଲେ, ଆଜି ସରଗିଗୁଡ଼ା ସରଗପୁରରେ ପରିଚିତ ହୋଇ ପାରି ନଥାନ୍ତା। ସତରେ ଜାଦୁଖେଳ ହିଁ ତାଙ୍କ ଗାଆଁର ଭାଗ୍ୟକୁ ବଦଳାଇ ଦେଇ ପାରିଛି।

ସେତେବେଳେ ଶୁକୁରା ସେବାଶ୍ରମରେ ଥାଇ ନବମ ଶ୍ରେଣୀରେ ପଢୁଥାଏ। ତାଙ୍କ ଗାଆଁରେ ଘେନୁଆ ବି ସେଇଠି ଦଶମରେ ପଢୁଥାଏ।

ଥରେ ଜଣେ ଜାଦୁକର ଆସି ସେବାଶ୍ରମ ବାରଣ୍ଡାରେ ଜାଦୁଖେଳ ଦେଖାଇଲା। ପିଲାମାନେ ତା'ର ଜାଦୁ ଖେଳ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ସେଦିନ ଶୁକୁରାର ଇଚ୍ଛା ହେଉଥିଲା, ସେ କେମିତି ଗୋଟାଏ ଜାଦୁକର ହୋଇ ଯାଆନ୍ତା। ଗାଆଁକୁ ଫେରିଲେ, ଖେଳ ଦେଖାଇ ଗାଆଁବାଲାଙ୍କୁ ଚମକେଇ ଦିଅନ୍ତା। ଜାଦୁକର କ'ଣ ଏତେ ସହଜରେ ଜାଦୁ କୌଶଳ ଶିଖେଇ ଦେବ? ଏକଥା ଚିନ୍ତାକରି ଶୁକୁରାର ମନ ବିକଳ ହେଉଥାଏ।

ଖେଳ ସରିଲା। ଜାଦୁକର ତା' ପେଡ଼ିରୁ ଡେଉଁରିଆ ବାହାର କରି କହିଲା - ଭାଇଯୋଁ! ଇଏ ହେ ତାବିଜ୍ । ଇସ୍‌କୋ

ପାଶ୍‌ମେ ରଖିଏ। ଯୋ ଚାହେଁଗେ, ଇଏ ତାବିଜ୍ ଆପ୍‌କୋ ଦେଗା। ପରୀକ୍ଷା ମେଁ ଜରୁର ପାସ୍ ହୋ ଯାଏଗା। କିମତ୍ ସିରିଫ୍ ଏକ ରୂପୟ୍ୟା।

ଘେନୁଆ ଖଣ୍ଡି ହିନ୍ଦି ବୁଝିପାରେ। ଜାଦୁକର କଥା ଶୁଣି ତା'ର ଇଚ୍ଛା ହେଲା, ସେ ଡେଉଁରିଆରୁ ଗୋଟିଏ ନେଇ ପିନ୍ଧିବ। ଗାଆଁରୁ ଆସିଲାବେଳେ ତା' ମାଆ ଖଜାଖିଆ ଖର୍ଚ୍ଚ ତିନି ଟଙ୍କା ଦେଇଥିଲେ । ସେଥିରୁ ସେ ଟଙ୍କାଟି କାଢ଼ି ଡେଉଁରିଆଟିଏ କିଣିଲା। ତା'ପରେ ସେ ଜାଦୁକରକୁ ତାଗିଦ୍ କରି ପଚାରିଲା- ଏଥର ମୋର ପାସ୍ ହୋଇଯିବ ତ?

ଜାଦୁକର ଅଭୟବାଣୀ ଶୁଣାଇ ଡେଉଁରିଆ ପିନ୍ଧାଇ ଦେଲା। ଘେନୁଆର ଆନନ୍ଦ କହିଲେ ନସରେ । ସେ ଜାଣେ, ତା'ର ଭଲ ପାଠ ହୁଏ ନାହିଁ। ତଥାପି ସେ ଡେଉଁରିଆ ବଳରେ ନିଶ୍ଚୟ ପାସ୍ କରିଯିବ । ତେଣୁ ତା'ର ପାଠପଢ଼ାର ଦରକାର ନାହିଁ। ଏତେ କଷ୍ଟ କାହିଁକି କରିବ? ଯାହାର ଡେଉଁରିଆ ନାହିଁ, ତାକୁ ସିନା ପଢ଼ିବାକୁ ହେବ! ତେଣୁ ଘେନୁଆ ପାଠ ନ ପଢ଼ି ମନ ମଉଜ କରି ବୁଲିଲା ।

ଡେଉଁରିଆ କିଣିଲା ପରେ, ଘେନୁଆର ସାଙ୍ଗ ସାଥୀମାନଙ୍କର ମନ କେମିତି କେମିତି ହୋଇ ଯାଇଥିଲା। ଜାଦୁକର ଚାଲିଗଲା ପରେ ଶୁକୁରା ମନ ଦୁଃଖ କରି ଘେନୁଆକୁ କହିଲା - ମୋର ଟଙ୍କାଟିଏ ଥିଲେ, ମୁଁ ବି ଗୋଟାଏ ଡେଉଁରିଆ କିଣି ଥାଆନ୍ତି।

ପରୀକ୍ଷା ସରିଲା। ଫଳ ବାହାରିଲା ବେଳକୁ ସବୁ ଓଲଟା। ଘେନୁଆ ପରୀକ୍ଷାରେ ଫେଲ୍ ହୋଇଛି ଜାଣି, ମନ ତାର ଆମ୍ବିଳା ହୋଇଗଲା। ତା'ହେଲେ ଠକ ଜାଦୁକର ମିଛରେ ଠକିଦେଲା? ସଙ୍ଗେ ସଙ୍ଗେ ସେ ଡେଉଁରିଆଟାକୁ ଖୋଲି ପଥରରେ ଛେଚି ଫୋପାଡ଼ି ଦେଲା।

ସ୍କୁଲର ପ୍ରଧାନ ଶିକ୍ଷକ ଘେନୁଆ ପାଖ ଦେଇ ଯାଉଥିଲେ। ପିଲାଙ୍କଠାରୁ ସବୁକଥା ଶୁଣି ହସିଦେଲେ। ପରୀକ୍ଷା ଫଳ ବାହାରି ଥିବାରୁ ସେଦିନ ଛାତ୍ରସଭା ବସିଲା।

ସଭାରେ ପ୍ରଧାନଶିକ୍ଷକ ପରିଶ୍ରମର ଫଳ ଆଉ ଘେନୁଆର ଡେଉଁରିଆ କିଣିବା ଘଟଣା ବର୍ଣ୍ଣନା କଲେ। ପିଲାମାନେ ସବୁ ବୁଝିପାରି ଠକ ଯାଦୁକରକୁ ଗାଳିଦେଲେ। ଯେଉଁ ପିଲା ଡେଉଁରିଆ କିଣିବାକୁ ଠିକ୍ କରି କିଣିପାରି ନଥିଲେ, ସେମାନେ ମନେ ମନେ ଖୁସିହେଲେ।

ପ୍ରଧାନ ଶିକ୍ଷକ ବୁଝାଇଦେଲେ -ପାଠ ନ ପଢିଲେ, କୌଣସି ଦେବତା କି ଜାଦୁକର ପରୀକ୍ଷାରେ ପାସ୍ କରେଇ ଦେଇ ପାରିବେ ନାହିଁ। କଥାରେ ଅଛି- କଷ୍ଟ କଲେ କୃଷ୍ଣ ମିଳେ। ପାଠ ନ ପଢି ପାସ୍ କରିବାକୁ ଚେଷ୍ଟା କରିବା ହେଉଛି, ବୋକାମାନଙ୍କର କାମ।

ଜାଦୁଖେଳ କେବଳ ମନୋରଞ୍ଜନ ପାଇଁ ହୋଇଥାଏ। ଜାଦୁ, ମନ୍ତ୍ର କିମ୍ବା ଡେଉଁରିଆ ଦ୍ଵାରା ଯଦି ଟଙ୍କା-ପଇସା, ମାନ

ସମ୍ମାନ କିମ୍ବା ପାଠ ମିଳି ପାରୁ ଥାଆନ୍ତା, ତେବେ କେବଳ ଯାଦୁକରମାନେ ହିଁ ଉଚ୍ଚ ଶିକ୍ଷିତ, ଧନୀଲୋକ ହୋଇ ଯାଆନ୍ତେ। ଯାଦୁକର ଯାହା ଦେଖାଏ - ତାହା ସବୁ ନକଲି। କଠିନ ପରିଶ୍ରମ ହେଉଛି, ସଫଳତାର ଚାବିକାଠି। ତେଣୁ ତୁମେ କେବେ ନକଲି ଯାଦୁ ପଛରେ ନଧାଇଁ 'ଅସଲି ଯାଦୁ' ଦେଖାଅ। ଫଳରେ ତୁମେ ନିଜର ତଥା ଦେଶର ଉନ୍ନତି କରିପାରିବ।

ସଭା ଶେଷରେ ଶୁକୁରା, ଧେନୁଆ ପାଖକୁ ଆସି ସବୁକଥା ବୁଝେଇଲା। ସେ ଦୁହେଁ ପାଠପଢ଼ି ଲୋକଙ୍କୁ 'ଅସଲି ଯାଦୁ' ଦେଖାଇବାକୁ ଶପଥ ନେଲେ ।



ଧେନୁଆ-ଶୁକୁରା ମିଶି ଦଶମରେ ପାଠ ପଢ଼ିଲେ । ଦୁହେଁ ନିଜର ଶପଥକୁ ମନେ ରଖିଥାନ୍ତି। ସ୍କୁଲ ଛୁଟି ହେଲେ ବି

ସାଙ୍ଗ ଗାଁ'କୁ ଯାଆନ୍ତି। ଗାଆଁକୁ ଯିବାବେଳେ ସେମାନେ ଯେତେ ଖୁସି ଥାଆନ୍ତି, ଗାଆଁରେ ପହଞ୍ଚିଗଲେ; ସେ ଖୁସି ତାଙ୍କର ରହେନାହିଁ। ଗାଆଁର ଅବସ୍ଥା ଯାହା, ଘରର ଅବସ୍ଥା ମଧ୍ୟ ସେଇଆ। ଅନ୍ୟ ଗାଆଁ ଆଉ ପାଖ ସହର ସହିତ ନିଜ ଗାଆଁର ଅବସ୍ଥାକୁ ତୁଳନା କରନ୍ତି।

ବିଭିନ୍ନ ପ୍ରକାର ଅଭାବ, ଅସୁବିଧା ଆଉ ଦୁଃଖ ସତେ ଯେମିତି ଏ' ଗାଆଁରେ ବସା ବାନ୍ଧି ରହିଛି। ଏଥିପାଇଁ ତାଙ୍କ ମନ ସରସ ନଥାଏ ।

ଦିନେ ଦୁଇ ସାଙ୍ଗ ବସି ବିଚାର କଲେ, ଯାହା ଯେମିତି ହେଉ, ପ୍ରଥମେ ଆମ ଗାଁ'କୁ ସଜାଡ଼ିବାକୁ ହେବ । ସହରପାଖ ଗାଁ'ରେ ଲୋକ, ଭଲ ଖାଇ-ପିଇ ମଜାରେ ଅଛନ୍ତି । ଚାଷ ବଢ଼ିଆ ହେଉଛି। ପୁଅ-ଝିଅ ସଫା-ସୁତୁରା ହୋଇ ସ୍କୁଲକୁ ଯାଉଛନ୍ତି । ଏ'ସବୁ ବୋଧହୁଏ, ସେହି ଅସଲି ଜାଦୁର କରାମତି। ଯାହା ପ୍ରଧାନ ଶିକ୍ଷକ ସେଦିନ ଛାତ୍ରସଭାରେ ବୁଝାଇଥିଲେ ।

ଆମ ଗାଁ'ର ଲୋକେ ସେହି ପୁରୁଣା ପରମ୍ପରା ଆଉ ଅନ୍ଧ ବିଶ୍ୱାସକୁ ଜାବୁଡ଼ି ଧରି ରହିଲେ, ଉନ୍ନତି କେମିତି ହେବ?

ନା'-ଏଥିପାଇଁ କିଛି ଗୋଟାଏ କରିବାକୁ ହେବ।

ଘେନୁଆ କହିଲା-ଆରେ ଭାଇ! ଆମ କଥାକୁ ଶୁଣିବ କିଏ ? ଆମ ବାପା-ମାଆ ତ ପ୍ରଥମେ ମାରି ଗୋଡ଼ାଇବେ।'

ଶୁକୁରା କହିଲା-ଦେଖିବା, କେଉଁ ପାଣି କୁଆଡେ ଯାଉଛି ? ଅବସ୍ଥା ଦେଖି ବ୍ୟବସ୍ଥା କଲେ, ସବୁ ଠିକ୍ ହେଇଯିବ।

ଏଥର ଦୁଇ ସାଙ୍ଗ ଯେମିତି ନିଶ୍ଚୟ ପାସ୍ କରିବେ, ସେଥିପାଇଁ ଜିଦ୍ ରଖି ମନ ଦେଇ ପାଠ ପଢୁଥାନ୍ତି। ପାଠପଢ଼ା ଶେଷରେ ଦି'ଜଣ ଗାଁ'କଥା ବି ଚିନ୍ତା କରନ୍ତି ।

ଆମ ଗାଆଁରେ କୌଣସି ପ୍ରକାରେ, ଆଉ କେତେଜଣଙ୍କୁ ଯଦି ପାଠ ପଢ଼ାଇ ଦିଆଯାଏ; ତେବେ ଲୋକଙ୍କ ମନ ନିଶ୍ଚୟ ପରିବର୍ତ୍ତନ ହୋଇ ପାରିବ। ଏ'କଥା ବି ଆଲୋଚନା ଭିତରକୁ ଆସେ ।

ଶୁକୁରାର ମନେ ପଡ଼ିଗଲା- ସେଦିନ ପ୍ରଧାନ ଶିକ୍ଷକ କହିଥିଲେ-ପାଠ ପଢ଼ିବାରେ ବୟସକୁ ଦେଖିବା ଠିକ୍ ନୁହେଁ । ସାନପିଲା ମଧ୍ୟ ବଡ଼ ମଣିଷକୁ ପାଠ ପଢ଼େଇ ପାରିବ। ପାଠରେ ଲାଜର ସ୍ଥାନ ନାହିଁ ।

ଅଳ୍ପ ବୟସର ଯୁବକ ତ ପୁଣି ଅଫିସର, ମନ୍ତ୍ରୀ ହୋଇ ଏ' ଦେଶକୁ ଶାସନ କରୁଛନ୍ତି ।

ଯାହାହେଉ, ଏଥର ଛୁଟିରେ ସେମାନେ କେତେଜଣଙ୍କୁ ନିଶ୍ଚୟ ପାଠ ଶିଖେଇବେ । ଅତିକମ୍‌ରେ ସମସ୍ତେ ନିଜ ନାମ ଲେଖି ଜାଣିବେ। ପୁରାଣ ବହି ପଢ଼ି ପାରିବେ। ସେଇଥିରୁ କେତେ ନୂଆକଥା ଶିଖିବେ। ସତରେ କେତେ ସୁବିଧା ହେବ ।

ସମୟ୍ ତ କାହାକୁ ଅପେକ୍ଷା କରେନା। ଶୁକୁରା-ଘେନୁଆ ପରୀକ୍ଷା ଦେଇ ପାସ୍ କଲେ । ଭଲ ନମ୍ବର ପାଇଲେ । ପ୍ରଧାନ ଶିକ୍ଷକ ତାଙ୍କର ପିଠି ଥାପୁଡ଼େଇ ବାଃ! ବାଃ! କଲେ । ପୁଣି ଥରେ ତାଙ୍କୁ 'ଅସଲି କାଦୁ' ଦେଖାଇବାକୁ ମନେ ପକାଇ ଦେଲେ ।

ସ୍କୁଲ ଛୁଟି ହେଲା। ଦି'ସାଙ୍ଗ ଗାଁ'କୁ ଚାଲିଲେ । ସବୁଥର ପରି ଏଥର ସେମାନେ ଖୁସିରେ ଗାଁ'କୁ ବୁଲିବାକୁ ଯାଉ ନାହାନ୍ତି । ତାଙ୍କର ମୁଣ୍ଡରେ ଏଥର ଅନେକ ଦାୟିତ୍ୱ । ଆଗରେ ବହୁତ କର୍ତ୍ତବ୍ୟ ।

ସେମାନେ ତାଙ୍କ ଗାଁ' ସରଗିଗୁଡ଼ାରେ ପହଞ୍ଚି ଦେଖିଲେ, ଗାଆଁ ଲୋକ ଚଇତି ପରବରେ ମାତିଛନ୍ତି । ନୂଆ ଉତ୍ସାହ ଆନନ୍ଦରେ ଗାଁ ଉଛୁଳି ପଡୁଛି । ଦଳ ଦଳ ଧାଙ୍ଗଡ଼ା-ଧାଙ୍ଗଡ଼ି ଆଦିବାସୀ ପୁଅ ଝିଅ ଅଣ୍ଟା ଧରାଧରି ହୋଇ ଡେମଷା ନାଚରେ ଲାଗିଛନ୍ତି। ଚାଙ୍ଗୁ, ମାଦଳର ତାଳେ ତାଳେ ତାଙ୍କର ପାଦ ପଡୁଥାଏ । ମଝିରେ ମଝିରେ ସରିଗଲା ରେ ............ ସ୍ୱର ଲହରୀ ଭାସି ଯାଉଥାଏ ।



ଘେନୁଆ ଆଉ ଶୁକୁରାଙ୍କ ମନ ଉଛନ୍ନ ହୋଇ ପଡ଼ିଲା। କେମିତି ଯାଇ ସେ ଡେମଷା ନାଚରେ ମିଶିଯିବେ, ସେକଥା ଭାବୁଥାନ୍ତି ।

ସେମାନେ ଆଜି ପାଠ ପଢ଼ି ସହରରୁ ଫେରୁଛନ୍ତି, ଶିକ୍ଷିତ ହୋଇଛନ୍ତି ସତ । ଯେତେ ଯାହା ହେଲେ ବି, ସରଗିଗୁଡ଼ାର ମଳି ମୁଣ୍ଡିଆ, ଆଉ ଅଧା ଲଙ୍ଗଳା ଲୋକମାନେ ତାଙ୍କର ଅତି ନିଜର । କିଏ ମଉସା ତ ପୁଣି କିଏ ପିଉସା ।

ଘେନୁଆ-ଶୁକୁରା ନିଜ ନିଜ ଘରେ ପଶିଲେ। ପୁଣି ସେଇ ପୁରୁଣା କଥା। ଏତେ ବଡ଼ ପରବ ଲାଗିଛି; କିନ୍ତୁ ତାଙ୍କ ଘରେ ଉପାସ, ଝଗଡ଼ା ଆଉ ଅଶାନ୍ତି । କଥା କ'ଣ କି....

ଶୁକୁରା ବାପା ସଦନ ଖିଲ ନିଶାପାଣି ପିଇ ଘରେ ମାଡ଼ପିଟ କରିଛି ।

ଦୁଇ ସାଙ୍ଗ ଏଥିରେ ବହୁତ ମନ ଦୁଃଖ କଲେ । ସେମାନେ ପରବରେ ଭାଗ ନେଲେ ନାହିଁ । ଦି'ଜଣ କଥାବାର୍ତ୍ତା ହୋଇ ଠିକ୍ କଲେ, ସୁବିଧା ଦେଖି ଗାଁ'ରେ ସଭାଟିଏ କରିବେ । ଗ୍ରାମବାସୀଙ୍କୁ ସବୁକଥା ବୁଝେଇବେ ।

ଚଇତି ପରବ ସରିଲା। ଦିନେ ଶୁକୁରା ଗାଁ'ର ଏ' ମୁଣ୍ଡରୁ ସେମୁଣ୍ଡ ବୁଲି କହିଦେଲା- କାଲି ସକାଳେ ଗ୍ରାମଦେବତୀଙ୍କ ଆଗରେ ସଭା ବସିବ । ସମସ୍ତଙ୍କୁ ଏଥିରେ ଯୋଗଦେବାକୁ ସେ ଅନୁରୋଧ କଲା ।

ସରଗିଗୁଡ଼ାରେ ସଭା ବସିବା ନୂଆ କଥା ।

ଭୋଟବେଳେ ସରପଞ୍ଚବାବୁ ନେତାମାନଙ୍କୁ ଆଣି ଦି' କୋଶ ଦୂର ମେରିଆ ପଡ଼ିଆରେ ସଭା କରନ୍ତି । ବିଡିଓ ବାବୁ କେବେ କେବେ ସେଇଠି ସଭା କରନ୍ତି । ଗରିବ ଲୋକଙ୍କୁ ମାଗଣାରେ ଲୁଗାପଟା ଆଉ ଚାଷ ଜିନିଷ ବି ବାଣ୍ଟନ୍ତି ।

କାଲି କିନ୍ତୁ ପ୍ରଥମ କରି ସରଗିଗୁଡ଼ାରେ ସଭା ହେବ । ଗାଁ'ଯାକରେ ନୂଆ ଆଶା, ନୂଆ ପୁଲକ ଦେଖା ଦେଇଛି ।

ସଦନ ଖିଲର ଛାତି ଆଜି କୁଣ୍ଢେମୋଟା ତା'ପୁଅ ବହୁତ ପାଠପଢି ସହରରୁ ଫେରିଛି। ବିଡ଼ିଓ ବାବୁ ଆଉ ସରପଞ୍ଚବାବୁଙ୍କ ପରି ସେ ପୁଣି ସଭାରେ ଭାଷଣ ଦେବ । ସହରରୁ ସେ କେତେକଥା ଶିଖି ଆସିଛି । ଗ୍ରାମବାସୀମାନେ ତା'ଠାରୁ ସେସବୁ ଶିଖିବେ। ଆଜିଠାରୁ ସେ ଟିକେ ଅଧିକ ନିଶା ନପିଇଲେ ମଜା ଆସିବ ନାହିଁ । ତେଣୁ ସେ ଶୁକୁରା ମାଆ ପାଖରେ ଟଙ୍କାପାଇଁ ଝଗଡ଼ା ଆରମ୍ଭ କରିଦେଲା ।

ଶୁକୁରା ସେଇଠି ପହଞ୍ଚି କହିଲା - ବାପା! କାଲିପରା ସଭା ହେବ । କେତେ ଭଲକଥା ସଭାରେ କୁହାଯିବ । ତମେ ଯଦି ନିଶା ପିଇଦେବ, ତା'ହେଲେ ସେକଥା କ'ଣ ତମେ ବୁଝି ପାରିବ ? ସଭା ସରିଯାଉ । ତମେ ମନଇଚ୍ଛା ନିଶାପାଣି ପିଇବ ।

ଏତେ ମିଠାକଥା ସଦନ କେବେ କାହାଠାରୁ ଶୁଣି ନଥିଲା ।

ଶୁକୁରା କଥା ସେ ବୁଝିଗଲା । ସତରେ ସେ ନିଶା ପିଇଦେଲେ, ଶୁକୁରାର ଭାଷଣ ତ ବୁଝି ପାରିବ ନାହିଁ । ତାକୁ ଏକଥା କେମିତି ନୂଆ ନୂଆ ଲାଗିଲା । ସେ କହିଲା- ତେବେ ମୁଁ ସଭାରେ କ'ଣ କରିବି ?

ଶୁକୁରା କହିଲା -ତମେ ଗ୍ରାମବାସୀଙ୍କୁ ନେଇ ଚୁପ୍‌ଚାପ୍ କରି ବସାଇବ । ନିଶା ପିଇ କେହି ଯେମିତି ସଭାକୁ ନ ଆସନ୍ତି, ସେକଥା ଦେଖିବ ।

ସଦନ କହିଲା-ଏଇକଥା - ଆରେ ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି ? ମୁଁ ଯାଉଛି, ବିଶୋଇ ମଦ ଦୋକାନକୁ ବନ୍ଦ କରି; ତାକୁ ସଭାକୁ ଡାକି ନେଇ ଆସିବି। କିଏ କେଉଁଠି ମଦ ପିଉଛି ପିଉ।

ଚାହୁଁ ଚାହୁଁ ସଦନ ଧାଇଁଲା-ବିଶୋଇ ଦୋକାନକୁ । ବାଟରେ ସେ ଯାହାକୁ ଦେଖିଲା, ତାକୁ କହିଲା-କାଲି ସଭା ହେବ। ଶୁକୁରା-ଘେନୁଆ ପାଠପଢ଼ି ଫେରିଛନ୍ତି। ସେମାନେ ଭାଷଣ ଦେବେ । ଆଜିଠାରୁ ନିଶାପାଣି ଦୋକାନ ବନ୍ଦ ହେବ। ନହେଲେ ଲୋକେ ଭାଷଣ ବୁଝି ପାରିବେ ନାହିଁ।

ଦୋକାନରେ ବସି ବସି ବିଶୋଇ ବୁଢ଼ାର କୁଜ ବାହାରି ପଡ଼ିଲାଣି। ଭାଷଣ କି' ଜିନିଷ ତା'ର ଧାରଣା ନଥାଏ। ଆଜି ପୁଣି ସଦନ ନିଜେ ଦୋକାନ ବନ୍ଦ କରାଉଛି, ସେ ନିଶ୍ଚୟ ସଭାକୁ ଯିବ। ଚାହୁଁ ଚାହୁଁ ସେ ଧଡ଼୍‌କରି ତା' ଦୋକାନ କବାଟ ବନ୍ଦକଲା ।

କାଲି ସଭା ହେବା ସଦନ ମନରେ ଆନନ୍ଦ କହିଲେ ନସରେ । ତାକୁ ଯିଏ ଦେଖିବ, କହିବ- ଆଜି ତା' ପୁଅ ଶୁକୁରାର ବାହାଘର ହେଉଛି । ସେ ଏ'ଘରେ ପଶି ସେଘରେ ବାହାରୁଛି । ଯିଏ ଦିନରାତି ନିଶାପିଇ ଗାଁ'ଯାକରେ ଗଣ୍ଡଗୋଳ କରେ, ସେ ଆଜି ବୁଲି ବୁଲି ସମସ୍ତଙ୍କୁ ନିଶା ପିଇବାକୁ ମନା କରୁଛି । ତା' କଥା ଶୁଣି ଲୋକେ କାବା ହୋଇ ଯାଉଛନ୍ତି ।

ସଭା କେମିତି କ'ଣ ହେବ ? କେଉଁ ପ୍ରକାର ଭାଷଣ ଦେଲେ, ଲୋକେ ଗ୍ରହଣ କରିବେ; ଧେନୁଆ ଏଥିପାଇଁ କାଗଜ, କଲମ ଧରି ବ୍ୟସ୍ତ ।

କେଉଁ କାରଣ ପାଇଁ ଆମ ଗାଁ'ର ଉନ୍ନତି ହୋଇ ପାରୁନାହିଁ, ଶୁକୁରା ତା'ର ଏକ ତାଲିକା ପ୍ରସ୍ତୁତ କରୁଛି ।

ଧେନୁଆର ବାପା ପଞ୍ଚୁ ଖରାକୁ ଜାନୀ ଦେବତା କାଳିସୀ ଲାଗନ୍ତି । ଠାକୁରାଣୀଙ୍କ ପ୍ରତିନିଧି ଭାବରେ ସେ ଗ୍ରାମବାସୀଙ୍କୁ କଥା କହେ । ଢୋଲ, ଝାଞ୍ଜ, ମହୁରୀ ବାଜେ । ଲୋକେ ହାତଯୋଡ଼ି ଅଧିଆ ପଡ଼ନ୍ତି । କହିବାକୁ ଗଲେ- ପଞ୍ଚୁ ହାତରେ ତାଙ୍କ ଗାଁ'ର ଭାଗ୍ୟ ନିର୍ଭର କରେ । ପୂଜା-ବଳି, ଭୋଗ-ରାଗ ପଞ୍ଚୁ ଇଚ୍ଛାରେ ହୁଏ। ବଳି ପଡ଼ିବା ଦିନ ପଞ୍ଚୁ ଘରେ ମାଂସ ଝୋଳ ହୁଏ । ଗ୍ରାମବାସୀଙ୍କୁ ଠକି, ମିଛକହି ସେ ଯାହା ରୋଜଗାର କରେ; ସେଥିରେ ସେ କିନ୍ତୁ ଶାନ୍ତିରେ ଚଳି ପାରେନା । ସବୁବେଳେ ଦୁଃଖ ଆଉ ଅଭାବ ତାକୁ ଲାଗି ରହିଥାଏ ।

ଘେନୁଆ ସଭାରେ ଭାଷଣ ଦେବ, ଏକଥା ଶୁଣି ପଞ୍ଚୁର ଗୋଡ଼ ତଳେ ଲାଗୁନାହିଁ ।

ସେ ଆଗରୁ କେତେଥର ମେରିଆ ପଡ଼ିଆରେ ସଭା ହେଉଥିବାର ଦେଖିଛି । ସେଠାରେ ଯେମିତି ମଣ୍ଡପ ବନ୍ଧା ହୋଇଥିଲା, ସେଇମିତି ସରଗିଗୁଡ଼ାରେ ମଧ୍ୟ ହେବ। ସେ ନିଜେ କଟୁରୀ ଧରି ବାଉଁଶ କାଟି ଆଣିଛି । ଶାବଳ ନେଇ ପୋତିଛି । ଫୁଲ ତୋଳିଆଣି ଘେନୁଆ ମାଆକୁ ଫୁଲମାଳ ତିଆରି କରିବାକୁ ଦେଇଛି । ଏବେ ବି ତା'ର ମନେ ଅଛି, ଏଗାର ବର୍ଷ ତଳେ ମେରିଆ ପଡ଼ିଆରେ ବିଡ଼ିଓ ବାବୁ ସଭା କରୁଥାନ୍ତି । ସେ ଘେନୁଆକୁ କାନ୍ଧରେ ବସାଇ ସଭାକୁ ନେଇ ଯାଇଥିଲା । ସଦନ ଶୁକୁରାକୁ ମଧ୍ୟ ନେଇକି ଯାଇଥିଲା । ସେଦିନ କେତେଜଣ ସରକାରୀ ବାବୁ କହିଲେ-ସରକାର ମାଗଣାରେ ଖାଇବା, ପିଇବା, ରହିବା ବ୍ୟବସ୍ଥା କରିଛନ୍ତି, ଯେଉଁ ପିଲା ପଢ଼ିବାକୁ ଚାହିଁବ; ତାକୁ ଆମେ ନେଇ ସେବାଶ୍ରମରେ ରଖିବୁ । ପାଠ ପଢ଼େଇବୁ ।

ସଦନ ଶୁକୁରାକୁ ନେଇ ସେଇଠି ଛାଡିଦେଇ ଆସିଲା । ପଞ୍ଚୁ ମଧ୍ୟ ଘେନୁଆକୁ ସେବାଶ୍ରମରେ ଛାଡ଼ିଦେଇ ଆସିଥିଲା ।

ଆଜି ସେ ଦୁହେଁ ପାଠପଢି, ମଣିଷ ହୋଇ ନିଜ ଗାଁ'କୁ ଫେରି ଆସିଛନ୍ତି ।

କଥାରେ ଅଛି-ଗୋଠ ମାତିଲେ ଖଣ୍ଡିଆ ମାତେ । ଏଣେ ବିଶୋଇ ବୁଢ଼ା କେତେ ଜଣ ଲୋକଙ୍କୁ ନେଇ ମାଟି ଆଣି ସଭାମଣ୍ଡପ ବାନ୍ଧିବାରେ ଲାଗି ପଡ଼ିଛି।

ସରଗିଗୁଡ଼ା ଗାଆଁରେ ନୂଆ ନିଶା ଲାଗିଛି। ଯେଉଁମାନଙ୍କ ପାଇଁ ଗାଁ'ର ଅବନତି ହେଉଥିଲା, ସେମାନେ ତ ସବୁ ମାତିଛନ୍ତି; ଅନ୍ୟମାନଙ୍କ କଥାକୁ ପଚାରେ କିଏ ?

ସରଗିଗୁଡ଼ାରେ ସଭାହେବ । ଖବର ଆଖପାଖ ଗାଆଁ ବାଙ୍ଗିରିପୋଷ; ଚିମିଟାପାଲି, ନାକ୍‌ଟିଡ଼ଙ୍ଗର ଆଉ କେନ୍ଦୁଗୁଡ଼ାରେ ପହଞ୍ଚି ସାରିଥିଲା । ଯିଏ ଶୁଣିଲା ସିଏ ଆଶ୍ଚର୍ଯ୍ୟ ହେଲା । କେତେଜଣ ଆସି ସଭାମଣ୍ଡପ ଦେଖି ବୁଲିଗଲେଣି।

ପଞ୍ଚୁ ଖରାକୁ ରାତିଯାକ ନିଦ ନାହିଁ। ପାହନ୍ତା ବେଳକୁ କେନ୍ଦୁଗୁଡ଼ାର ନାଟଦଳ ଆସି ପହଞ୍ଚିଗଲେ। ଜୁଇ ଲଗାହେଲା । ରାତିରୁ ପଞ୍ଚୁ ସଭା ମଣ୍ଡପକୁ ପୂଜା କରି ସାରିଥିଲା । ଢୋଲ, ମହୁରୀ ବାଜିଲା । ମଣ୍ଡପ ଉପରେ ନାଟ ଆରମ୍ଭ ହୋଇଗଲା । ରାତି ପାହିଲା ବେଳକୁ ଆଖପାଖ ଦଶ ଖଣ୍ଡ ଗାଁ'ର ଲୋକ ଆସି ଠୁଳ ହୋଇ ଯାଇଥିଲେ ।

ଶୁକୁରା ଆଉ ଘେନୁଆ ମଣ୍ଡପ ଉପରକୁ ଉଠିଲେ । ସବୁ ଲୋକ ହରିବୋଲ ହୁଳହୁଳି ଦେଇ ସେ ଜାଗାକୁ କମ୍ପାଇ ଦେଲେ ।

ପଞ୍ଚୁ ଠାକୁରାଣୀଙ୍କ ସିନ୍ଦୁର ଆଣି ଶୁକୁରା ଆଉ ଘେନୁଆ

ମୁଣ୍ଡରେ ଲଗାଇ ଦେଲା। ମଦ ଦୋକାନୀ ବିଶୋଇବୁଢ଼ା ଟାଙ୍କ ବେକରେ ଫୁଲମାଳ ପକାଇ ଦେଲା।

ଶୁକୁରା ମାଆ, ଘେନୁଆ ମାଆ ପାଖାପାଖି ବସିଥାନ୍ତି। ଏ'ସବୁ ଦୃଶ୍ୟ ଦେଖି ତାଙ୍କ ଆଖିରୁ ଆନନ୍ଦରେ ଲୁହ ଗଡ଼ି ପଡୁଥାଏ। ସତରେ ଆଜି ତାଙ୍କର ମାଆ ଜୀବନ ସାର୍ଥକ ହୋଇଛି ।

ଗାଆଁର ନାଏକ ସଦା ଗୋଲାରୀ ସଭାମଣ୍ଡପକୁ ଉଠି ହାତଯୋଡ଼ି ସମସ୍ତଙ୍କୁ କହିଲେ-ଭାଇମାନେ! ଆମ ଗାଁ'ର ଦୁଇଟା ଭେଣ୍ଡିଆ ଶୁକୁରା ଆଉ ଘେନୁଆ ପାଠପଢ଼ି ସହରରୁ କେତେ ଭଲକଥା ଶିଖି ଆସିଛନ୍ତି । ସେ ସବୁକଥା ଆମର ଭଲ ପାଇଁ କହିବେ । ସମସ୍ତେ ଚୁପ୍‌ଚାପ୍ ଶୁଣିବେ । ତାଙ୍କର କଥାକୁ ଆମେମାନେ ଶୁଣିକରି କାମରେ ଲଗାଇବା।

ତା'ପରେ ସେ ସଭାମଣ୍ଡପ ତଳକୁ ଯାଇ ଏକ ଲୟରେ ସଭାକାର୍ଯ୍ୟ ଦେଖିଲେ ।

ପ୍ରଥମେ ଘେନୁଆ ହାତଯୋଡ଼ି ଗ୍ରାମବାସୀଙ୍କୁ ନମସ୍କାର କରି କହିଲା - ଭାଇମାନେ! ସବୁ ଗୁରୁଜନମାନଙ୍କୁ ମୋର ବିନମ୍ର ନମସ୍କାର । ଆଜି ବଡ଼ ଆନନ୍ଦର ଦିନ । ଆମେ ସମସ୍ତେ ଏ' ଗାଆଁର ଉନ୍ନତି ପାଇଁ ଏକଜୁଟ ହେଇଛେ । ଏଥିପାଇଁ ଆମକୁ ପ୍ରଥମେ ଅନ୍ଧବିଶ୍ୱାସ ଆଉ କୁସଂସ୍କାର ବିରୁଦ୍ଧରେ ଲଢ଼େଇ କରିବାକୁ ହେବ ।

ଅନ୍ଧ ବିଶ୍ୱାସର ଅର୍ଥ ହେଲା - ବହୁତ ଦିନ ଧରି ଆମ ମନରେ ରହି ଆସିଥିବା ଭୁଲ୍ ଧାରଣା ।

ଆପଣମାନେ ଜାଣିଥିବେ, ଆଗେ ଆମର ଆଦିବାସୀ ଭାଇମାନେ ଜମିରେ ଭଲ ଫସଲ ଫଳିବ ବୋଲି ମଣିଷ ବଳି ଦେଉଥିଲେ । ଏହିଭଳି କାମକୁ ଅନ୍ଧ ବିଶ୍ୱାସ କହନ୍ତି ।

ଆମ ଗାଆଁରେ କେହି ଯଦି କିଛି ରୋଗରେ ପଡ଼ୁଛନ୍ତି, ତେବେ ଆମେ ଭାବୁଛେ-ଠାକୁରାଣୀ ରାଗିଛନ୍ତି । ତେଣୁ ଆମେ କୁକୁଡ଼ା ବଳି ଦେଉଛେ। ରୋଗୀକୁ ସିନା ଔଷଧ ଦେଲେ ଭଲ ହେବ । କୁକୁଡ଼ା ମାରି ପୂଜାରି ଦିଶାରି ଖାଇବ। ଏଣେ ରୋଗୀର ରୋଗ ବଢ଼ି ବଢ଼ି ଶେଷରେ ସେ ମରିବ। ତେଣୁ ଆପଣମାନେ ବଳି କିମ୍ବା କାଳିସୀକୁ ଅନ୍ଧ ପରି ବିଶ୍ୱାସ କରିବେ ନାହିଁ ।

ପିଲାମାନେ ପାଠ ପଢ଼ିଲେ, ଝିଅମାନେ ଶିକ୍ଷିତା ହେଲେ ଗାଁ'କୁ ବିପଦ ପଡ଼େ । ଏକଥା କେତେଜଣ ମୂର୍ଖ ଲୋକଙ୍କର ବିଶ୍ୱାସ । ଆମ ସରକାର ଶିକ୍ଷକ ଦେଇଛନ୍ତି, ସ୍କୁଲ ଘର ନ ଥିବାରୁ ସେମାନେ ଯାଇ ସହରରେ ରହି ମାସକୁ ମାସ ଦରମା ନେଉଛନ୍ତି । ଆମେ ସମସ୍ତେ ମିଶିଲେ, ଆଠ ଦିନରେ ସ୍କୁଲ ଘରଟାଏ ଠିଆହୋଇ ପଡ଼ିବ ।

ଖାଲି ପିଲା ନୁହଁନ୍ତି, ପୁରୁଷ ଆଉ ମହିଳା ସମସ୍ତେ ଅକ୍ଷର ଶିଖି ବହି, ପୁରାଣ ପଢ଼ିବେ। ଆମେ ଦି' ଜଣ ତାଙ୍କୁ ସବୁଦିନ

ପଢ଼ାଇବୁ । ଦେଖିବେ ଆମ ଗାଁ'ର ଲୋକେ ଅଳ୍ପଦିନରେ କେତେ ନୂଆ ନୂଆ କଥା ଜାଣିଯିବେ ।

ଆମ ଗାଁ'ରେ ଏତେ ଅଭାବ ଲାଗି ରହିଛି କାହିଁକି ? ତା'ର କାରଣ ହେଲା- ଆମର ଆଦିବାସୀ ଭାଇମାନେ ପ୍ରତିବର୍ଷ ନୂଆ ନୂଆ ଜଙ୍ଗଲ, ଡ଼ଙ୍ଗରରେ ପୋଡ଼ୁଚାଷ କରୁଛନ୍ତି । ଫଳରେ ଜଙ୍ଗଲ ନଷ୍ଟ ହୋଇ ଯାଉଛି । ଆମକୁ ଜଙ୍ଗଲରୁ ଯାହା ଫଳମୂଳ, କାଠ, ଔଷଧ ମିଳୁଥିଲା, ତାହା ଆଉ ମିଳି ପାରୁନାହିଁ । ଜମିକୁ ଭଲଭାବେ ଚାଷ କରାଯାଉ ନଥିବାରୁ ଫସଲ ମଧ୍ୟ ଭଲ ଫଳୁନାହିଁ। ଯାହା ଗଣ୍ଡେ ମିଳିଲା, ତାକୁ ଭାଗ୍ୟ ବୋଲି ଭାବି ସନ୍ତୁଷ୍ଟ ହୋଇ ଯାଉଛନ୍ତି ।

ଏ'କାମ ସବୁ ଠିକ୍ ନୁହେଁ । ଆମକୁ ନୂଆ ଜଙ୍ଗଲ ତିଆରି କରିବାକୁ ହେବ। ଜମିରେ ଖତ ସାର ଦେଇ ଚାଷ କରିବାକୁ ହେବ । ଦେଖିବେ- ଅଳ୍ପ ଦିନ ଭିତରେ ଆମ ଗାଁ'ରୁ ସବୁ ଅଭାବ ଦୂର ହୋଇଯିବ।

ଆମ ଗାଁ'କୁ ରାସ୍ତାଟିଏ ନାହିଁ । ନେତା, ସରକାରୀ ଲୋକ ଆମ ଗାଁ'କୁ ଆସିପାରୁ ନାହାନ୍ତି । ଆମେ ସମସ୍ତେ ମିଶି ଝୁଡ଼ିଏ ଲେଖା ମାଟି ପକେଇଲେ, ରାସ୍ତାଟା ହୋଇଯିବ । ବଡ଼ ବଡ଼ ଲୋକମାନେ ଆସି ଆମ ଗାଁ'ର ଭଲମନ୍ଦ ବୁଝି ସାହାଯ୍ୟ ବି କରି ପାରିବେ ।

ଶେଷରେ ଧେନୁଆ କହିଲା - ଏସବୁ କାମରେ ଆମେ ଦୁଇଜଣ ମିଶି ଗ୍ରାମବାସୀଙ୍କୁ ସାହାଯ୍ୟ କରିବୁ। ଜୟହିନ୍ଦ୍।

ପଞ୍ଚୁ ଖରାକୁ ଛାଡ଼ି ସମସ୍ତେ ତାଳିମାରି ଘେନୁଆ କଥାକୁ ସମର୍ଥନ କଲେ। ଭାଷଣ ଶୁଣି ପଞ୍ଚୁର ରାଗ ପଞ୍ଚମକୁ ଉଠିଗଲାଣି । ସେ ମନେ ମନେ ଭାବୁଥିଲା, ଏମିତି କୁଳାଙ୍ଗାର ପୁଅ, ନିଜ ହାତରେ ନିଜ ଜିଭ କାଟିବ କିଏ ଜାଣିଥିଲା ? ଘେନୁଆ କଥାରେ ଯଦି ଗାଁ ଚଳେ, ତେବେ ତ ସର୍ବନାଶ ହୋଇଯିବ । ସେ ପୁଣି ଚଳିବ କେମିତି ? ଆଉ କ'ଣ ଲୋକେ ତାକୁ ମାନିବେ ?

ଘେନୁଆ ପରେ ଶୁକୁରା ଭାଷଣ ଦେଇ କହିଲା - ମୋର ଗୁରୁଜନମାନଙ୍କୁ ନମସ୍କାର ଜଣାଇ ମୁଁ ଦି'ପଦ କହିବି । ଘେନୁଆ ଭାଇ ଯାହା କହିଲେ- ସେକଥା ମାନିଲେ, ଆମେ ନିଜର ତଥା ଗାଆଁର ଆଉ ଦେଶର ମଙ୍ଗଳ କରି ପାରିବା ।

ଆଉ ଗୋଟିଏ କଥା- ଆମ ସମାଜରେ ଛୁଆଁ-ଅଛୁଆଁ ଭେଦଭାବ ଯେତେଦିନ ଥିବ, ଆମର ଉନ୍ନତି ସମ୍ଭବ ହୋଇ ପାରିବ ନାହିଁ । ଆମେ ସମସ୍ତେ ଭଗବାନଙ୍କର ସନ୍ତାନ । ଭାଇ ଭାଇ ପରି ସମସ୍ତେ ମିଳିମିଶି ରହିଲେ, ସମସ୍ତଙ୍କୁ ସୁଖ ମିଳି ପାରିବ। ମଣିଷକୁ ଛୁଇଁଦେଲେ, ଜାତି ଚାଲିଯାଏ- ଏ'ସବୁ ଭୁଲ ଧାରଣାକୁ ହଟାଇବାକୁ ପଡ଼ିବ।

ଆମ ଓଡ଼ିଆ ଲକ୍ଷ୍ମୀ ପୁରାଣର କଥା ସମସ୍ତେ ଶୁଣିଥିବେ। ଲକ୍ଷ୍ମୀ ଠାକୁରାଣୀ ଶ୍ରୀୟା ଚଣ୍ଡାଳୁଣୀ ଘରେ ଭୋଗ ଖାଇଲେ ବୋଲି ଜଗନ୍ନାଥ ମହାପ୍ରଭୁ ତାଙ୍କୁ ମନ୍ଦିରରୁ ବାହାର କରି ଦେଇଥିଲେ । ତା'ପରେ ମହାପ୍ରଭୁ ହଟହଟା ହୋଇ ନିଜର ଭୁଲ୍ ବୁଝିପାରିଲେ ।

ଦ୍ୱିତୀୟ କଥା ହେଲା- ସର୍ବନାଶି ନିଶାପାଣି ଅଭ୍ୟାସ ସମସ୍ତଙ୍କୁ ଛାଡ଼ିବାକୁ ହେବ । ସବୁ ପ୍ରକାର ଅଭାବ, ଅସୁବିଧା ଆଉ ଝଗଡ଼ାର ମଞ୍ଜି ହେଉଛି; ଏଇ ନିଶାପାଣି । ଆଜି ସଭାରେ ସମସ୍ତେ ଶପଥ ନେବା, କେହି ନିଶାପାଣି ଛୁଇଁବା ନାହିଁ । ବିଶୋଇ ବୁଢ଼ାର ମଦ ଦୋକାନ ସବୁଦିନ ପାଇଁ ବନ୍ଦ ରହିବ ।

ବିଶୋଇ ବୁଢ଼ା ବଡ଼ ଆଗ୍ରହରେ ଭାଷଣ ଶୁଣୁଥିଲା । ତା'ର ଦୋକାନ ସବୁଦିନ ପାଇଁ ବନ୍ଦ ହେବା କଥା ଶୁଣିଲା ପରେ ତା' ଦେହରୁ ଗୋଟାଏ ଝାଳ ବୋହିଗଲା । ସତରେ ମଦ ଦୋକାନ ବନ୍ଦ ହୋଇଗଲେ, ତା' ଛୁଆପିଲା ବଞ୍ଚିବେ କେମିତି ? ପୁରୁଷ ପୁରୁଷ ଧରି ଏଇ ମଦ ବେପାର କରି ସେମାନେ ଚଳି ଆସୁଛନ୍ତି । ଆଜି ଶୁକୁରା ପାଠପଢ଼ି ତା'ର ଦାନା ବୁଡ଼େଇବାକୁ ଯାଉଛି । କ'ଣ କରିବ ଭାବୁ ଭାବୁ ସେ ସିଧା ଉଠିଲା-ମଣ୍ଡପ ଉପରକୁ ।

କାନ୍ଦ କାନ୍ଦ ହୋଇ ଗ୍ରାମବାସୀଙ୍କୁ କହିଲା-ଦୋକାନ ବନ୍ଦ ହେଲେ, ମୋ ଛୁଆ ଭାସିଯିବେ, ମୋ କଥା ଟିକେ ବିଚାର କର ।

ଘେନୁଆର ବାପା ପଞ୍ଚୁ କେତେବେଳୁ କ'ଣ କହିବ କହିବ ହେଉଥିଲା । ଏଇ ସୁବିଧାରେ ସେ ଭୁଷ୍‌କରି ଉଠିପଡି ମଣ୍ଡପ ଉପରେ ମନଇଚ୍ଛା ଘେନୁଆକୁ ଗାଳିଦେଲା । ଦଳେ ଲୋକ ସଭା ମଣ୍ଡପଠାରୁ କିଛି ଦୂରରେ ବସି ଚୁପ୍‌ଚାପ ହେଉଥିଲେ ।

ତାଙ୍କ ଭିତରୁ ରତନା ଖିଲ ଆସି ମଣ୍ଡପ ତଳେ ଠିଆ ହୋଇ ବଡ଼ ପାଟିରେ କହିଲା-କି କଥା କହୁଛନ୍ତି ସାଆନ୍ତେ ? ଅନ୍ୟ ଜାତିର ଲୋକମାନେ ସାଆନ୍ତମାନଙ୍କ ସାଙ୍ଗରେ ମିଶିଲେ, ତାଙ୍କର ପବିତ୍ର ଆତ୍ମା ମାରା ହୋଇଯିବ । ଆମକୁ ବି ପାପ ଲାଗିବ । ଏ'କାମ କରନାହିଁ, ଆମର ଛୋଟକଥା ମାନ, ବାବୁ!

ଲୋକଙ୍କ ଗହଳି ଭିତରେ ବସି ସଦନ ଚୁପ୍‌ଚାପ୍ ଭାଷଣ ଶୁଣୁଥିଲା । ଗଣ୍ଡଗୋଳିଆ କଥାବାର୍ତ୍ତା ଶୁଣି ସେ ମଧ୍ୟ ମଣ୍ଡପ ଉପରେ ଯାଇ ହାଜର । ବଡ଼ ପାଟିରେ ମନଇଚ୍ଛା କ'ଣ କହି ଚାଲିଲା । କେହି କାହାରି କଥାକୁ ଶୁଣିପାରୁ ନଥାନ୍ତି ।

ହୋ-ହାଲ୍ଲାରେ ସଭାମଣ୍ଡପଟି ଏକ ପ୍ରକାର କୁରୁକ୍ଷେତ୍ରରେ ପରିଣତ ହେଲା । ଲୋକେ ଯିଏ ଯୁଆଡ଼େ ଉଠି ଘରକୁ ପଳାଇଲେ !

ଚାହୁଁ ଚାହୁଁ ଲୋକ ଗହଳିପୂର୍ଣ୍ଣ ସଭା ମଣ୍ଡପଟା ଶୂନ୍‌ଶାନ୍ ହେଇଗଲା । ଶୁକୁରା, ଘେନୁଆ ଯେତେ ନେହୁରା ହେଲେ ମଧ୍ୟ କେହି ଶୁଣିଲେ ନାହିଁ । ଶୁକୁରା ଅସହାୟ ଅବସ୍ଥାରେ ଘେନୁଆର ମୁହଁକୁ ଚାହିଁ ରହିଥିଲା ।

ତାପରଦିନ ସକାଳୁ ଶୁକୁରା ଆସି ଘେନୁଆକୁ ଡାକି ନେଇଗଲା। ନିରୋଳା ଜାଗାରେ ବସି ଦୁଇ ସାଙ୍ଗ କଥା ହେଲେ- ଚାଣକ୍ୟ ଶ୍ଳୋକରେ ପରା ଲେଖାଅଛି- 'କଣ୍ଟକେ

ନୈବ କଣ୍ଟକମ୍ । ଅନ୍ଧବିଶ୍ୱାସକୁ ଅନ୍ଧବିଶ୍ୱାସ ଦ୍ୱାରା ହିଁ ହଟେଇବାକୁ ପଡ଼ିବ। ଶୁକୁରା, ଘେନୁଆ କାନରେ ଫିସ୍ ଫିସ୍ କରି ତା'ର ଯୋଜନା ଖୋଲି କହିଦେଲା ।

ଘେନୁଆ ଖୁସି ହୋଇ କହିଲା - ଠିକ୍ ଅଛି, ଦେଖିବା ଏଥର ।

ନିଜ ଯୋଜନାକୁ କେମିତି ଠିକ୍ ଭାବରେ ସଫଳ କରିପାରିବେ, ସେ ବିଷୟ୍ କଥାବାର୍ତ୍ତା ହୋଇ ଦୁଇ ସାଙ୍ଗ ସିଧା ସହରକୁ ଚାଲିଗଲେ ।

ସଞ୍ଜବେଳେ ପଞ୍ଚୁ ସଦନକୁ କହିଲା-ଏମିତିକା କୁଳାଙ୍ଗାର ପୁଅ, ଥିଲେ ଯେତେ, ମଲେ ସେତେ। ସେଗୁଡ଼ାଙ୍କ ମୁହଁ ଚାହିଁବା ଉଚିତ ନୁହେଁ ।

ସଦନ କହିଲା-ଆମର ପୂର୍ବପୁରୁଷ ପରା କହିଛନ୍ତି- ପାଠ ପଢ଼ିଲେ ଗାଁ'କୁ ବିପଦ । ଦେଖିଲ ନା, ଏବେ ଟୋକା ଦିଇଟାଙ୍କ ପାଇଁ ଆମ ଗାଁ'ର ସତ୍ୟାନାଶ ହେଇଥାନ୍ତା ।

ଶୁକୁରା-ଘେନୁଆ ଗାଆଁ ଛାଡ଼ିଯିବାର ତିନି ଦିନ ହେଇଗଲାଣି । ତଥାପି ସରଗିଗୁଡ଼ାର ସଭାକଥା ଲୋକଙ୍କ ଆଖିରେ ନାଚି ଉଠୁଛି ।

ଯେଉଁମାନେ ସଭାରେ ମାତିଥିଲେ, ସେମାନେ ଶୁକୁରା-ଘେନୁଆଙ୍କ ନାଁ ଶୁଣିଲେ ଚିଡ଼ୁଛନ୍ତି । ସମସ୍ତଙ୍କର ଗୋଟାଏ ଧାରଣା

ହେଇଯାଇଛି- ସେ ଟୋକା ଦୁଇ ଜଣ ଏ' ଗାଆଁର ପରମ ଶତ୍ରୁ ।

ସେଦିନ ଛାଇ ଲେଉଟା ବେଳକୁ ଗାଁ' ମୁଣ୍ଡରେ ହଠାତ୍ ବାଜା ବାଜି ଉଠିଲା । ଯୋଡ଼ିମହୁରୀ ଶବ୍ଦରେ ଗାଆଁଟା ଉଚ୍ଛୁଳି ପଡ଼ିଲା । ଘଟଣା କ'ଣ ଜାଣିବା ପାଇଁ ଗାଁ'ଯାକର ପିଲାଛୁଆ, ବୁଢ଼ା-ବୁଢ଼ୀ, ଧାଙ୍ଗଡ଼ା-ଧାଙ୍ଗିଡ଼ୀ ଗାଁ' ମୁଣ୍ଡକୁ ଧାଇଁଲେ ।

ସେମାନେ ଯାହା ଦେଖିଲେ, ତାଙ୍କର ଆଖି ଖୋସି ହୋଇ ପଡ଼ିଲା ।

ଅଦିନରେ ଲାଠି ଦେବତାଙ୍କୁ ଧରି ଦେବତା ଲାଗିଥିବା ପୂଜକ - ଶିରା ତାଙ୍କ ଗାଆଁକୁ ପଶିଆସିଲେ । ପଞ୍ଚୁ ସମସ୍ତଙ୍କୁ ବୁଝାଇଦେଲା - ଗାଆଁକୁ ବିପଦ ପଡ଼ିଲେ, ଲାଠି ଦେବତା ଏମିତି ଅଦିନରେ ଆସନ୍ତି ।

ଗ୍ରାମବାସୀ ଦେବତାଙ୍କୁ ସନ୍ତୁଷ୍ଟ କରିବାପାଇଁ ଝୁଣା, ଧୂପ, ଭୋଗରାଗ ଆଣି ଠୁଳକଲେ । ସମସ୍ତଙ୍କ ମନରେ ଛାନିଆଁ ପଶିଯାଇଛି । ଶିରା ମୁଣ୍ଡକୁ ଝାଙ୍କି ଭୟଙ୍କର ନାଚ କରୁଛି । ପଞ୍ଚୁ ପରମ୍ପରା ଅନୁସାରେ ପୂଜା କାମ ସାରି ପଚାରିଲା - ମା'ପ୍ରଭୁ ଆମର ଅପ୍ରାଧ କ୍ଷମାକର। ଗାଆଁର ଭଲ ମନ୍ଦ କହିବା ହେଉ ।

ଶିରା ଗର୍ଜି ଉଠି କହିଲା - ମୁଁ ଏ' ଗାଁ'କୁ ଧ୍ୱଂସ କରିବି ।

ଶିରାର କଥା ଶୁଣି ପଞ୍ଚୁ ଭୟରେ ଥରିବାକୁ ଲାଗିଲା । କେତେଜଣ ଚୁପ୍‌ଚାପ୍ ହେଲେ, ପ୍ରତିକାର କ'ଣ ପଚାର ।

ଶିରା ଜିଭ କାଢ଼ି ମୁଣ୍ଡ ଝୁଲାଇ ଗଁ ଗଁ ହେଉଥିଲା। ସେ ଗର୍ଜିଉଠି କହିଲା - ଶୁକୁରା-ଧେନୁଆଙ୍କୁ ମୁଁ ଦୂତ କରି ପଠାଇଥିଲି । ସେ ତମର ଭଲ ପାଇଁ ସବୁକଥା କହୁଥିଲେ । ତମେ ତାଙ୍କୁ ଗାଁ'ରୁ ବାହାର କରି ଦେଇଛ । ତାଙ୍କୁ ଡାକିଆଣି ଗାଁ'ରେ ରଖ। ତାଙ୍କ କଥା ମାନ, ନ ହେଲେ ମୁଁ ଏ' ଗାଁ'କୁ ଧ୍ୱଂସ କରିବି ।

ଶିରାର କଥାକୁ ସମସ୍ତେ କାନପାରି ମନଦେଇ ଶୁଣିଲେ । ନିଜେ ଲାଠି ଦେବତାଙ୍କ କଥା ଶୁଣି ସାରି, ସମସ୍ତେ ନିଜକୁ ଜଣେ ଜଣେ ଦୋଷୀ ମନେ କଲେ ।

ପଞ୍ଚୁ ସିନା ମିଛ ସତ କହି ଗାଆଁ ଲୋକଙ୍କୁ ଭଣ୍ଡିଦିଏ; କିନ୍ତୁ ଲାଠି ଦେବତାକୁ ତା'ର ଭାରି ବିଶ୍ୱାସ, ବହୁତ ଭୟ ।

ପଞ୍ଚୁ ସଦନକୁ କୁଣ୍ଢାଇ ପକାଇ କହିଲା - ସଦନ ଭାଇ! ଆମ ପୁଅ ଠାକୁରଙ୍କ 'ଦୂତଥିଲେ । ଯେମିତି ହେଲେ, ତାଙ୍କୁ ଖୋଜି ଗାଁ'କୁ ଆଣିବା। ସେ ଯାହା କହିବେ, ସେଇଆ ହେବ।

ଧୂପ, ଝୁଣା ଦିଆଗଲା। ଶିରା ନାଚି ନାଚି ଗାଁ'ରୁ ବିଦାୟ ନେଲେ।

ଏ'କଥା ଆଖପାଖ ସବୁ ଗାଁ'ରେ ପ୍ରଘଟ ହୋଇଗଲା।

ସେଦିନ ସଞ୍ଜବେଳେ ସଭାମଣ୍ଡପ ପାଖରେ କେତେଜଣ ଠିଆହୋଇ ଲାଠି ଦେବତା ଓ ଶିରାଙ୍କ ବିଷୟରେ ଆଲୋଚନା କଲେ । ଶୁକୁରା-ଘେନୁଆ କେଡ଼େ ଭାଗ୍ୟବାନ୍ ସତରେ! ସେମାନେ ଲାଠି ଦେବତାଙ୍କ ପରି ପ୍ରତ୍ୟକ୍ଷ ଦେବତାଙ୍କର ଦୂତ ହୋଇ ଆସିଥିଲେ । ଆମେ ମୂର୍ଖଲୋକ ତାଙ୍କ କଥାକୁ ବୁଝିପାରିଲେ ନାହିଁ । ପୁରୁଣା କଥାକୁ ଧରି ରହିଲେ । ଏବେ ଗାଆଁଟା ଧ୍ୱଂସ ହେବାକୁ ଯାଉଛି ।

ସେତିକିବେଳେ ପଞ୍ଚୁ ଫୁଲ, ଚନ୍ଦନ, ଧୂପ, ଦୀପ ଧରି ସେଇଠି ପହଞ୍ଚି କହିଲା - ଏ' ମଣ୍ଡପ ଗୋଟିଏ ଦେବତା ମଣ୍ଡପ ହୋଇ ଯାଇଛି । ଏଇଠି ଆମ ଭାଗ୍ୟର ପରିବର୍ତ୍ତନ ହେବ ।

ପଞ୍ଚୁ ମଣ୍ଡପକୁ ପୂଜା କଲା । ରତନା ଖିଲ ବାଜା ବଜେଇଲା । ଚାହୁଁ ଚାହୁଁ ଲୋକେ ଜମା ହୋଇଗଲେ । ତିନି ଦିନ ପରେ ସଭାମଣ୍ଡପ ପୁଣି ହସିଉଠିଲା ।

ବିଶୋଇ ବୁଢ଼ା ଧଇଁ ସଇଁ ହେଇ ଆସି କହିଲା- ପଞ୍ଚୁ ସାଆନ୍ତେ! ଘେନୁଆ-ଶୁକୁରା ଆମ ଗାଁ' ମୁଣ୍ଡରେ ଆସି ପହଞ୍ଚିଗଲେଣି। ଏ'କଥା ଶୁଣି ସମସ୍ତଙ୍କ ମନରେ ଚମକ ଖେଳିଗଲା । ସଭା ମଣ୍ଡପକୁ ଛାଡି ସମସ୍ତେ ଗାଆଁ ମୁଣ୍ଡକୁ ଚାଲିଲେ । ଗାଁ'ର ସ୍ତ୍ରୀଲୋକମାନେ ବନ୍ଦାପନା କରି ତାଙ୍କୁ ପାଛୋଟି ଆଣିଲେ ।

ଘେନୁଆ-ଶୁକୁରା ଆଜି ଲାଠି ଦେବତାଙ୍କର ଦୂତ ହୋଇ ଆସିଛନ୍ତି । ଏ'କଥା ସମସ୍ତଙ୍କ ମନରେ ଦୃଢ଼ ଧାରଣା ହୋଇ ଯାଇଥାଏ । ସେ ଦୁହେଁ ନୀରବ ହୋଇ ସଭାମଣ୍ଡପକୁ ଚାଲିଲେ ।

ସଭାମଣ୍ଡପରେ ମଶାଲ ଲାଗିଲା । ବାଜା ବାଜିଲା। ପଞ୍ଚୁ, ସଦନ, ଗାଁ' ନାୟକ ସମସ୍ତେ ଘେନୁଆ-ଶୁକୁରାକୁ ଆଦର କରି ମଣ୍ଡପ ଉପରକୁ ନେଲେ।

ସଭା ପୁଣି ଥରେ ଆରମ୍ଭ ହେଲା। ପଞ୍ଚୁ, ସଦନ, ଗାଁ'ର ନାୟକ ସଦାଗୋଲାରୀ ଆଗ ଲୋକଙ୍କୁ ବୁଝାଇ କହିଲେ- ଭାଇମାନେ! ସେଦିନ ସଭାରେ ଶୁକୁରା-ଘେନୁଆ ଯାହାସବୁ କହିଥିଲେ, ସେ ସବୁକୁ ଆମେ ବୁଝି ନପାରି, ମାନିଲେ ନାହିଁ । ଲାଠି ଦେବତା ଏ'ମାନଙ୍କୁ ଦୂତ କରି ପଠାଇଛନ୍ତି । ତାଙ୍କ କଥା ମାନି ଗାଁ'କୁ ରକ୍ଷା କରିବାକୁ ହେବ।

ଘେନୁଆ-ଶୁକୁରା ହାତଯୋଡ଼ି କହିଲେ- ଆମକୁ ସମସ୍ତେ ସାହାଯ୍ୟ କରନ୍ତୁ । ଦେଖିବେ ଏ'ଗାଁର ରୂପ କେଇଟା ଦିନରେ ବଦଳିଯିବ । ଗାଆଁର ଉନ୍ନତି ପାଇଁ ଆମେ ଜୀବନ ଦେବାକୁ ପ୍ରସ୍ତୁତ ଅଛୁ ।

ସମସ୍ତେ ତାଳିମାରି ତାଙ୍କୁ ସମର୍ଥନ କଲେ ।

ତା' ପରଦିନ ସକାଳୁ ଶୁକୁରା ଆଉ ଘେନୁଆ ତାଙ୍କର କାମ ଆରମ୍ଭ କରିଦେଲେ ।

ଚାହୁଁ ଚାହୁଁ କେଇଟା ଦିନରେ ଗାଁ'ର ରାସ୍ତା ତିଆରି ହୋଇଗଲା। ସ୍କୁଲଘର ଛପର ହୋଇଗଲା। ମାଷ୍ଟର ପିଲାଙ୍କୁ ନେଇ ପଢ଼ାପଢ଼ି ଆରମ୍ଭ କରିଦେଲେ ।

ଦିନେ ଶୁକୁରା ଗ୍ରାମସେବକଙ୍କୁ ସରଗିଗୁଡ଼ାକୁ ଡାକି ଆଣିଲା । ଜମିରେ କିପରି ସାର, ଖତ ଦିଆଯିବ, କେଉଁ ପ୍ରଣାଳୀରେ ଚାଷ କଲେ, ଅଧିକ ଫସଲ ଫଳିବ; ସେକଥା ବୁଝେଇ ଦେଲେ । ଗାଆଁ ଲୋକ ସମସ୍ତେ ନୂଆ ପ୍ରଣାଳୀରେ ଚାଷ କରିବାକୁ ସେଇଠି ଶପଥ ନେଇଥିଲେ । ଗ୍ରାମସେବକଙ୍କ ପରାମର୍ଶ ଅନୁସାରେ ସେମାନେ ଏବେ ଚାଷବାସ କରୁଛନ୍ତି ।

ବିଶୋଇ ମଦ ଦୋକାନ ବନ୍ଦ ହେଲା ପରେ, ସେ ସେଇଠି ସାର, ଆଉ ବିହନ ଦୋକାନ ଖୋଲି ସୁଖରେ ଚଳୁଛି ।

ସଦନ ଆଉ ମଦ ପିଉନାହିଁ । ମଦପିଆ ଲୋକମାନେ ଲାଠି ଦେବତାଙ୍କର ଶତ୍ରୁ । ଏକଥା ସେ ଶୁକୁରାଠାରୁ ବୁଝିଯାଇଛି। ତା'ର ଯାହା ଦି' ଏକର ଜମି ଥିଲା, ସେଇଥିରେ ସାର, ଖତ ଦେଇ ଚାଷ କରୁଛି ।



ପଞ୍ଚୁ କାଳିସୀ, ବଳି ପକା ଛାଡ଼ି ନୂଆ ପ୍ରଣାଳୀରେ ଚାଷରେ ମନ ହଜେଇ ଦେଇଛି।

ଘେନୁଆ ସହରକୁ ଯାଇ ଜଙ୍ଗଲ ବିଭାଗ ଅଫିସରଙ୍କଠାରୁ ମାଗଣାରେ କେତେ ଫଳଗଛ ଚାରା ଆଣି ଗାଁ ଲୋକଙ୍କୁ ବାଣ୍ଟି ଦେଇଥିଲା। ସେସବୁ ଏବେ ଗାଁ ଚାରିପଟେ କୃତ୍ରିମ ଜଙ୍ଗଲ ସୃଷ୍ଟି କଲାଣି।

ମଝିରେ ମଝିରେ ଡାକ୍ତରବାବୁ ଗାଁକୁ ଆସି ଲୋକଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ଔଷଧ ଦେଇ ଯାଉଛନ୍ତି।

ଆଖପାଖ ଗାଆଁର ଲୋକମାନେ ଏବେ ସରଗପାଲି ଲୋକଙ୍କୁ ପଚାରୁଛନ୍ତି, ଏମିତି କେମିତି ହେଇପାରିଲା?

-ଶୁକୁରା ଆଉ ଘେନୁଆ ତାଙ୍କ ଗାଆଁର ଲୋକଙ୍କୁ ଏ'ପ୍ରଶ୍ନର ଉତ୍ତର ଅନେକ ଆଗରୁ ଦେଇ ସାରିଥିଲେ। କଠିନ ପରିଶ୍ରମ,



ଆନ୍ତରିକ ଚେଷ୍ଟା ଏବଂ ପରସ୍ପର ସହଯୋଗ ହେଉଛି, ସମସ୍ତ ପ୍ରକାର ସଫଳତାର ଚାବିକାଠି। ସ୍କୁଲରେ ପ୍ରଧାନ ଶିକ୍ଷକ ଆମକୁ ଅସଲ ଜାଦୁଖେଳ ଶିଖାଇଛନ୍ତି। ସେଇ ଅସଲି ଜାଦୁଖେଳ ଦେଖାଇ ଆମେ ଆମ ଗାଆଁର ରୂପ ବଦଳେଇ ଦେଇ ପାରିଛୁ ।

ସରଗିଗୁଡ଼ାର ଚାଷବାସ, ବୃକ୍ଷରୋପଣ, ରାସ୍ତାଘାଟ ତିଆରି ଆଉ ସବୁ ପ୍ରକାର ଉନ୍ନତି କଥାଶୁଣି କୋରାପୁଟର ଜିଲାପାଳ ଥରେ ସେ ଗାଆଁକୁ ବୁଲି ଆସିଥିଲେ। ସେଦିନ ସଂଧ୍ୟାରେ ଗ୍ରାମସଭା ଡକାଇ, ଶୁକୁରା ଆଉ ଘେନୁଆକୁ ଗ୍ରାମଶ୍ରୀ ଉପାଧି ସହ ପୁରସ୍କାର ଦେଲେ। ସରଗିଗୁଡ଼ା ଗାଁ'ର ନାଆଁ ସେହିଦିନ ଠାରୁ ସରଗପୁର ହେଇଥିଲା ।

